# ପ୍ରତ୍ନ-ଓଡ଼ିଆ

[ ଚର୍ଯ୍ୟା-ଗୀତିକା ଭିତ୍ତିକ ପ୍ରସ୍ତାବିତ ବ୍ୟାକରଣ ]

ଲେଖକ—ଡକ୍ଟର ଖଗେଶ୍ୱର ମହାପାତ୍ର

ପ୍ରଥମ ସଂସ୍କରଣ—୧୯୭୯

ପ୍ରକାଶକ—ଡକ୍ଟର ଖଗେଶ୍ୱର ମହାପାତ୍ର ©

ମୁଦ୍ରଣ—କୋଣାର୍କ ଆର୍ଟ ପ୍ରେସ, ଭୁବନେଶ୍ୱର

ମୂଲ୍ୟ—ଦଶ ଟଙ୍କା ମାତ୍ର

# THE PROTO-ORIYA

[ A Tentative Grammar based on the Carya Songs ]

BY **Prof. K. MAHAPATRA**

1st Edition, 1979

Publisher–**Prof. K. MAHAPATRA** ©

Printed at–**Konark Art Press,** Bhubaneswar

Rupees **Ten** only

# ତୃତୀୟ ଭାଗ

# ( ଚର୍ଯ୍ୟା-ଗୀତିକା )

---

ନମଃ ଶ୍ରୀ ବଜ୍ରଯୋଗିନ୍ୟୈ

୧

କାଆ ତରୁବର ପଞ୍ଚ ବି ଡାଳ
ଚଞ୍ଚଳ ଚୀଏ ପଇଠୋ[୧] କାଳ ॥
ଦିଟ[୨] କରିଅ ମହାସୁହ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ ॥ ଧ୍ରୁ ॥
ସଅଲ ସ[ମା]ହିଅ କାହି କରିଅଇ
ସୁଖ ଦୁଃଖେତେଁ ନିଚିତ ମରିଆଇ[୩] ॥ ଧ୍ରୁ ॥
ଏଡ଼ି ଏଉ[୪] ଛାନ୍ଦକ ବାନ୍ଧ କରଣକ ପାଟେର[୫] ଆସ
ସୁନୁପାଖ ଭିଡି[୬] ଲାହୁ[୭] ରେ ପାସ ॥ ଧ୍ରୁ ॥
ଭଣଇ ଲୁଇ ଆମ୍ହେ ସାଣେ[୮] ଦିଠା
ଧମଣ ଚମଣ ବେଣି ପାଣ୍ଡି[୯] ବଇଠା[୧୦] ॥ ଧ୍ରୁ ॥

---

୧. ପଇଠା ? (ଶ., ବା.) ତୁ-ଚର୍ଯା-୧୬।୩୧।୩୫।୪୯ [ପଇଠା]
୨. ଦିଢ
୩. ମରିଅଇ
ଏଡି ଏଉ (ପୋଥି), ଏଡ଼ି ଅଉ (ବା), ଏଡ଼ି ଉ (ମୁ) ?
୪ = କରଣ କପଟେର
୫. ଛିଡ଼ି
୬. ଲେହୁ ? (ବା., ଶ.)
୭. ଆଣେ
୮. ପିଣ୍ଡି ?
୧୦ ବଇଠା

# ୨

## ରାଗ ଗଉଡ଼ା

କୁକ୍କୁରୀ ପାଦାନମ୍ ।

ଦୁଲି ଦୁହି ପିଟା ଧରଣ ନ ଜାଇ[୧]
ରୁଖେର ତେନ୍ତଲି କୁମ୍ଭୀରେ ଖାଅ[୧] ॥
ଆଙ୍ଗନ ଘରପଣ ସୁନ ଭୋ ବିଆତୀ
କାନେଟ ଚୌରି[୨] ନିଲ ଅଧରାତୀ ॥ ଧ୍ରୁ ॥
ସୁସୁର[୩] ନିଦଗେଲ ବହୁଡ଼ୀ ଜାଗଅ
କାନେଟ ଚୋରେ ନିଲ କା ଗଇ ମାଗଅ ॥ ଧ୍ରୁ ॥
ଦିବସଇ ବହୁଡ଼ୀ କାଉଇ[୪] ଡରେ ଭାଅ
ରାତି ଭଇଲେ କାମରୁ ଜାଅ ॥ ଧ୍ରୁ ॥
ଅଇସନ ଚର୍ଯ୍ୟା କୁକ୍କୁରୀ ପାଏଁ ଗାଇଡ଼[୫]
କୋଡ଼ି ମଝେଁ[୬] ଏକୁଡ଼ି ଅହିଁ[୭] ସମାଇଡ଼[୫,୮] ॥ ଧ୍ରୁ ॥



---

୧. ଜାଅ ? (ବା), ଖାଇ
୨. ଚୌରେ/ଚୋରେ
୩. ସସୁର (ଟୀକା)
୪. କାଉଛ
୫. ଗାଇଲ - ସମାଇଲ ? (ଶ), ଗାଇତି - - ସମାଇତ ? (ମୁ)
୬. ମଝେଁ/ମାଝେଁ
୭ ହେଁ ହିଅହିଁ
୮. ଇମାଇଡ

## ୩

### ରାଗ ଗଉଡ଼ା

ବିରିବା ପାଦାନାଂ ।

ଏକ ସେ ଶୁଣ୍ଡିନି ଦୁଇ ଘରେ ସାନ୍ଧଅ
ଚୀଅଣ ବାକଳଅ ବାରୁଣୀ ବାନ୍ଧଅ ।। ଧ୍ରୁ ।।
ସହଜେ ଥିର କରୀ ବାରୁଣୀ ସାନ୍ଧେ[୧]
ଜେଁ ଅଜରାମର ହୋଇ ଦିଟ[୨] କାନ୍ଧ[୩] (ନ୍ଧଃ) ।। ଧ୍ରୁ ।।
ଦଶମି ଦୁଆରତ ଚିହ୍ନ ଦେଖଇଆ[୪]
ଆଇଲ ଗରାହକ ଅପଣେ ବହିଆ ।। ଧ୍ରୁ ।।
ଚଉଶଠୀ ଘଡ଼ିଏ ଦେଟ[୫] ପସାର
ପଇଠେଲ ଗରାହକ ନାହି ନିସାର ।। ଧ୍ରୁ ।।
ଏକ ସ ଡୁଲୀ[୬] ସରୁଇ ନାଳ
ଭଣନ୍ତି ବିରୁଆ ଥିର କରି ଚାଳ ।। ଧ୍ରୁ ।।

---

* ପୋଥିରେ ଅଛି-ଶୁଣ୍ଡିଣୀ

୧. ଚାନ୍ଧ (ନାନ୍ଧ)
୨. ଦିଢ଼
୩. କାନ୍ଧେ ? (ବା.)
୪. = ଦେଖିଆ
୫. ଦେଲ (ବା.), ଦେଇ (ଶ) ., ଦେଅ ?
୬. ଏକ ଘଡୁଲୀ

# ୪

## ରାଗ ଅରୁ

ଗୁଣ୍ଡରୀ ପାଦାନାଂ ।

ତିଅଡ୍ଡା ଚାପୀ ଜୋଇନି ଦେ ଅଙ୍କବାଲୀ
କମଲ କୁଲିଶ ଘାଣ୍ଟେ[୧] କରହୁଁ ବିଆଲୀ ।। ଧ୍ରୁ ।।
ଜୋଇନି ତଁଇ ବିନୁ ଖନହି ନ ଜୀବମି
ତୋ ମୁହ ଚୁମ୍ବୀ କମଲରସ ପାବମି ।। ଧ୍ରୁ ।।
ଖେଁପହୁଁ[୨] ଜୋଇନି ଲେପ ନ ଜାଅ
ମଣି କୁଳେ ବହିଆ ଓଡିଆଣେ ସମାଅ[୩] ।। ଧ୍ରୁ ।।
ସାସୁ ଘରେଁ ଘାଲି କୋଞ୍ଚା ତାଲ
ଚାନ୍ଦସୁଜବେଣି ପଖା ଫାଲ ।। ଧ୍ରୁ ।।
ଭଣଇ ଗୁଡରୀ ଅହ୍ମେ କୁନ୍ଦୁରେ ବୀର
ନରଅ ନାରୀ ମଝେଁ ଉଭିଲ ଚୀରା ।। ଧ୍ରୁ ।।

---

୧. ଘାଣ୍ଟେ (ସେ), ଘାଣ୍ଟି (ଶ) ?
୨. ଖେପହୁଁ
୩. ସମାଅ (ସ)



## ରାଗ ଗୁଞ୍ଜରୀ

ଭୁଷିକୁ ପାଦାନାମ୍ ।

ଭବଣଇ ଗହଣ ଗମ୍ଭୀର ବେଗେଁ ବାହୀ ।
ଦୁଆନ୍ତେ ଚିଖିଲ ମାଝେଁ ନ ଥାହୀ ॥ ଧ୍ରୁ ॥
ଧାମାର୍ଥେ ଚାଟିଲ ସାଙ୍କମ ଗଢଇ[୧]
ପାରଗାମି ଲୋଅ ନିଭର ତରଇ ॥ ଧ୍ରୁ ॥
ଫାଡ଼ିଅ ମୋହତରୁ ପଟି ଜୋଡ଼ିଅ ।
ଅଦୟଦିଢ଼ି[୨] ଟାଙ୍ଗୀ ନିବାଣେ କୋହ୍ଳିଅ[୩] ॥ ଧ୍ରୁ ॥
ସାଙ୍କମତ ଚଢ଼ିଲେ ଦାହିଣ ବାମ ମା ହୋହୀ
ନିୟଡ଼୍ଡୀ ବୋହି ଦୂରମଁ ଜାହୀ ॥ ଧ୍ରୁ ॥
ଜଇ ତୁମ୍ହେ ଲୋଅ ହେ ହୋଇବ ପାରଗାମୀ ।
ପୁଛତୁ[୪] ଭୁଷିଲ ଅନୁତ୍ତର ସାମୀ ।



---

୧. ଗଢ଼ଇ
୨. ଅଦଅ ଦିଢ଼(ଡି)
୩. କୋଡ଼ିଅ
୪. ଦୂର ମା
ପୁଛହ (ବା) ?

## ୬

### ରାଗ ପଟମଞ୍ଜରୀ

ଭୁସୁକୁ ପାଦାନାମ୍ ।।

କାହେରି[୧] ଘିନି ମେଲି ଅଚ୍ଛହୁ କୀସ ।
ବେଢିଲ ହାକ ପଡଅ ଚୌଦୀସ ।। ଧ୍ରୁ ।।
ଆପଣା ମାଂସେଁ ହରିଣା ବୈରୀ ।
ଖଣହ ନ ଛାଡଅ ଭୁସୁକୁ ଅହେରି[୨] ।। ଧ୍ରୁ ।।
ତିଣ ନ ଛୁପଇ ହରିଣା ପିବଇ ନ ପାଣୀ ।
ହରିଣା ହରିଣୀର ନିଲଅ ଣ ଜାଣୀ ।। ଧ୍ରୁ ।।
ହରିଣୀ ବୋଲଅ ହରିଣା ସୁଣ ହରିଆ[୩] ତୋ ।
ଏବଣ ଛାଡୀ ହୋହୁ ଭାନ୍ତୋ ।। ଧ୍ରୁ ।।
ତରଙ୍ଗତେଂ[୪] ହରିଣାର ଖୁର ନ ଦୀସଅ[୫] ।
ଭୁସୁକୁ ଭଣଇ ମୂଢା ହିଅହିଣ ପଇସଇ[୫] ।। ଧ୍ରୁ ।।



---

୧. କାହେରେ; = କାହେ ରେ (ଚା) ।
୨. ଭୁସୁକୁ ଅହେରି
୩. ହରିଣା
୪. ତରଙ୍ଗେନ୍ତେ (ଚା, ସେ) ?
୫. ଦୀସଇ (ଚା.), ପଇସଅ (ମୁ)

## ୭

### ରଗ ପଟ୍ଟମଞ୍ଜରୀ

କାହ୍ନୁ ପାଦାନାମ୍ ।।

ଆଲିଏଁ କାଲିଏଁ ବାଟ ରୁନ୍ଧେଲା
ତା ଦେଖି କାହ୍ନୁ ବିମନ ଭଇଲା ।। ଧ୍ରୁ ।।
କାହ୍ନୁ କାହିଁ ଗଇ କରିବ ନିବାସ
ଜୋ ମନ ଗୋଅର ସୋ ଉଆସ ।। ଧ୍ରୁ ।।
ତେତିନି ତେତିନି ତିନି ହୋ ଭିନ୍ନା
ଭଣଇ କାହ୍ନୁ ଭବପରିଚ୍ଛିନ୍ନା ।। ଧ୍ରୁ ।।
ଜେ ଜେ ଆଇଲା ତେତେ ଗେଲା ।
ଅବଣା ଗବଣେ କାହ୍ନୁ ବିମନ ଭଇଲା[1] ।। ଧ୍ରୁ ।।
ହେରି ସେ କାହ୍ନି ଣିଅଡି ଜିନଉର ବଟଇ
ଭଣଇ କାହ୍ନୁ ମୋହିଅହି[2] ନ ପଇସଇ ।। ଧ୍ରୁ ।।



---

* 'ବାଟ ରୁନ୍ଧେଲା' ମଧ୍ୟରେ ବୃଥା ଏ-କାର ଅଛି । 'କାହିଁ-ଗଇ' ମଧ୍ୟରେ ବୃଥା ବ ଅଛି ।

୧. = ଭଇଲା
୨. = ମୋ ହିଅହି

## ୮

### ରାଗ ଦେବଶ୍ରୀ

କମ୍ବଳାମ୍ବର ପାଦାନାମ୍ ।।

ସୋନେ ଭରିତା[୧] କରୁଣା ନାବୀ
ରୁପା ଥୋଇ ମହ୍ନିକେ[୨] ଠାବୀ ।। ଧ୍ରୁ ।।
ବାହତୁ କାମଲି ଗଅଣ ଉବେ ସେଁ
ଗେଲୀ ଜାମ ବହୁଡ଼ଇ[୩] କଇସେଁ ।। ଧ୍ରୁ ।।
ଖୁଣ୍ଟି ଉପାଡୀ ମେଲିଲି କାଚ୍ଛି
ବାହ୍ଲୁ ତୁ କାମଲି ସଦ୍‌ଗୁରୁ ପୁଚ୍ଛି ।। ଧ୍ରୁ ।।
ମାଙ୍ଗତ ଚ ନ୍ହିଲେ[୪] ଚଉଦିଶ ଚାହଅ
କେଡୁଆଲ ନାହି କେଁ କି ବାହବକେ ପାରଅ ।। ଧ୍ରୁ ।।
ବାମ ଦାହିଣ ଚାପୀ ମିଲିମିଲି ମାଗା[୫]
ବାଟତ ମିଲିଲ ମହାସୁହ ସ(ସୁ)ଙ୍ଗା[୬] ।।



---

୧. ଭରିଲି (ସେ., ମୁ) ?
୨. ନାହ୍ନି କେ ; ନାହ୍ନିକ(ବା) ?
୩. ବହୁଡଇ = ବାହୁଡଇ
୪. ଚଢ଼ିଲେ = ଚଢ଼ିଲେ
୫. ମାଙ୍ଗା
୬. ସାଙ୍ଗା ; ସୁଙ୍ଗା (ସେ) ?

# ୯

## ରାଗ ପଟମଞ୍ଜରୀ

କାହ୍ନୁ ପାଦାନାମ୍ ।

ଏବଂକାର ଦୃଢ ବାଖୋଡ ମୋଡ୍‌ଡିଉ
ବିବିହ ବିଆପକ ବାନ୍ଧଣ ତୋଡ଼ିଉ ।। ଧ୍ରୁ ।।
କାହ୍ନୁ ବିଲସଅ ଆସବ ମାତା
ସହଜ ନଳିନୀବନ ପଇସି ନିବିତା ।। ଧ୍ରୁ ।।
ଜିମଜିମ କରିଣା କରିଣିରେଁ ରିସଅ
ତିମତିମ ତଥତା ମଅ ଗଳ ବରିଁସଅ ।। ଧ୍ରୁ ।।
ଛଡଗଇ ସଅଳ ସହାବେ ସୁଧ
ଭବାଭବ ବଳାଗ ନ ଛୁଧ ।। ଧ୍ରୁ ।।
ଦଶବଳରଅଣ ହରିଅ ଦଶଦିସେଁ
ବିଦ୍ୟା[୧] କରି ଦମକୁଁ[୨] ଅକିଲେ ସେଁ ।। ଧ୍ରୁ ।।



---

୧. ଅବିଦ୍ୟା (ଟୀକା)
ଦଅିବୁଁ ଦମ (ବା., ଶ.)

## ୧୦

### ରାଗ ଦେଶାଖ

ନଗର ବାହିରିରେଁ[୧] ଡୋମ୍ବି ତୋହରି କୁଡିଆ
ଛଇଛୋଇ[୨] ଯାଇ ସୋ ବ୍ରାହ୍ମ ନାଡିଆ ॥ ଧ୍ରୁ ॥
ଆଲୋ ଡୋମ୍ବି ତୋଏ ସମ କରିବେ ମ[୩] ସାଙ୍ଗ
ନିଘିଣ କାହ୍ନ କପାଳି ଜୋଇ ଲାଗ[୪] ॥ ଧ୍ରୁ ॥
ଏକସୋ ପଦମା ଚୌଷଠ୍ଠୀ ପାଖୁଡ଼ୀ
ତହିଁ ଚଡ଼ି ନାଚଅ ଡୋମ୍ବୀ ବାପୁଡ଼ୀ ॥ ଧ୍ରୁ ॥
ହାଲୋ ଡୋମ୍ବୀ ତୋ ପୁଛମି ସଦଭାବେ
ଆଇସସି[୫] ଜାସି ଡୋମ୍ବି କାହାରି ନାବେଁ ॥ ଧ୍ରୁ ॥
ତାନ୍ତି ବିକଣଅ ଡୋମ୍ବୀ ଅବର ନା ଚଙ୍ଗଡ଼ା[୬]
ତୋହୋର ଅନ୍ତରେ ଛାଡ଼ି ନଡ଼ ଏଟ୍‌ଟା[୭] ॥ ଧ୍ରୁ ॥
ତୁଲୋ ଡୋମ୍ବୀ ହାଉଁ କପାଳୀ
ତୋହୋର ଅନ୍ତରେ ମୋଏ ଘଲିଲି ହାଡେରି ମାଳୀ ॥ ଧ୍ରୁ ॥
ସରବର ଭାଞ୍ଜୀଅ ଡୋମ୍ବୀ ଖାଅ ମୋଲାଣ
ମାରମି ଡୋମ୍ବୀ ଲେମି ପରାଣ ॥ ଧ୍ରୁ ॥



---

୧. ବାହିରି = ବାହିରି ରେ
୨. = ଛୋଇଛୋଇ
୩. = କରିବେମ ; କରିବେ ମୋ (ବା) ?
୪. ଲାଗୀ
୫. ଆଇସସି
୬. ଚଙ୍ଗଡ଼ା
୭ ନଡ଼ଏଡ଼ା ; = ନଡ଼ପେଡ଼ା (ବା., ଶ)

# ୧୧

## ରାଗ ପଟମଞ୍ଜରୀ

କୃଷ୍ଣାଚାର୍ଯ୍ୟ ପାଦାନାମ୍ ॥

ନାଡ଼ି ଶକ୍ତି ଦିଟ[୧] ଧରିଣ ଖଟ୍ଟେ ।
ଅନହା ଡମରୁ ବାଜଏ ବୀରନାଦେ[୨] ॥
କାହ୍ନ କାପାଳୀ ଯୋଗୀ ପଇଠ ଅଗ୍ଭରେ
ଦେହ ନଅରୀ ବିହରଏ ଏକାରେଁ[୩] ॥ ଧ୍ରୁ ॥
ଆଳି କାଳି ଘଣ୍ଟା ନେଉର ଚରଣେ
ରବି ଶଶୀକୁଣ୍ଡଳ କିଉ ଆଭରଣେ ॥ ଧ୍ରୁ ॥
ରାଗ ଦେଶ ମୋହ ଲାଇଅ ଛାର
ପରମ ମୋଖ ଲବଏ ମୁକ୍ତିହାର ॥ ଧ୍ରୁ ॥
ମାରିଅ ଶାସୁ ନଣନ୍ଦ ଘରେ ଶାଳୀ
ମାଅ ମାରିଆ କାହ୍ନ ଭଇଅ[୪] କବାଳୀ ॥ ଧ୍ରୁ ॥



---

୧. ଚିତ୍ତ
୨. ଅଦେ (ସେ) ? ; ନାଡେ (ମୁ) ?
୩. = ଏକାକାରେଁ
୪. ଭଇଲ (ଭା)

## ୧୬

[ରାଗ] ଭୈରବୀ

କୃଷ୍ଣ ପାଦାନାମ୍ ॥

କରୁଣା ପିହାଡି ଖେଳହୁଁ ନଅ ବଳ
ସଦ୍‌ଗୁରୁ ବୋହେଁ ଜିତେଲ ଭବବଳ ॥ ଧ୍ରୁ ॥
ଫୀଟଉ ଦୁଆ ମାଦେସିରେ[୧] ଠାକୁର
ଉଆରି[୨] ଉଏସ କାହ୍ନୁ ଣିଅଡ ଜିନଉର ॥ ଧ୍ରୁ ॥
ପହିଲେଁ ତୋଡ଼ିଆ ବଡ଼ିଆ ମରଡ଼ିଇଉ[୩]
ଗଅବରେଁ ତୋଳିଆ ପାଞ୍ଚଜନା ଘୋଲିଉ[୪] ॥ ଧ୍ରୁ ॥
ମତିଏଁ ଠାକୁରକ ପରିନିବିତ୍ତା
ଅବଶ କରିଆ ଭବବଳ ଜିତା ॥ ଧ୍ରୁ ॥
ଭଣଇ କାହ୍ନୁ ଆମ୍ହେ ଭଲି[୫] ଦାହ[୬] ଦେହୁଁ
ଚଉଷଠ୍‌ଠୀ କୋଠା ଗୁଣିଆ ଲେହୁଁ ॥ ଧ୍ରୁ ॥



---

୧. = ମା ଦେହି ରେ (ସେ) / ମାଦେଷି ରେ (ବା)
୨. ଉଆରି
 = ମରଡ଼ି ଉ
୪. ଘାଲିଉ (ବା)
୫. ଭଲ (ବା) ?
୬. ଦାନ ; ଦାଅ/ଘ ?

# ୧୩

## ରାଗ କାମୋଦ

କୃଷ୍ଣାର୍ଯ୍ୟ ପାଦାନାମ୍ ।

ତିଶରଣ ଣାବୀ କିଅ ଅଠକ ମାରୀ[1]
ନିଅ ଦେହ କରୁଣା ଶୁନମେ ହେରୀ[2] ।। ଧ୍ରୁ ।।
ତରିତ୍ତା ଭବଜଳଧି ଜିମ କରି ମାଅ ସୁଇନା[3]
ମଝବେଣୀ ତରଙ୍ଗମ[4] ମୁନିଆ ।। ଧ୍ରୁ ।।
ପଞ୍ଚତଥାଗତ କିଅ କେଡୁଆଲ
ବାହଅ କାଅ କାହ୍ନିଲ ମାଆଜାଲ ।। ଧ୍ରୁ ।।
ଗନ୍ଧପରସରସ[5] ଜଇସୋ ତଇସୋ
ନିଂଦ ବିହୁନେ ସୁଇନା ଜଇସୋ ।। ଧ୍ରୁ ।।
ଚିଅ କଣ୍ଣହାର ସୁଣତ ମାଙ୍ଗେ
ଚଲିଲ କାହ୍ନ ମହାସୁହ ସାଙ୍ଗେ ।। ଧ୍ରୁ ।।



---

୧. = ଅଠ କମଳୀ
୨. = ଶୂନ ମେହେରୀ
୩. ମୁନିଆ ?
୪. = ତରଙ୍ଗ ମ (ଯେ, ବା)
୫ = ଗନ୍ଧପରସରସ

# ୧୪

## ଧନସୀରାଗ

ଡୋମ୍ବୀ ପାଦାନାଂ ॥

ଗଙ୍ଗା ଜଉନା ମାଝିଁରେ[1] ବହଇ ନାଈ
ତହିଁ ବୁଡ଼ିଲୀ ମାତଙ୍ଗି ପୋଇଆ[2] ଲୀଳେ ପାର କରେଇ ॥ ଧ୍ରୁ ॥
ବାହତୁ ଡୋମ୍ବୀ ବାହଲୋ ଡୋମ୍ବୀ ବାଟତ ଭଇଲ ଉଚ୍ଛାରା
ସଦ୍‌ଗୁରୁ ପାଅପଏ ଜାଇବ ପୁଣୁ ଜିଣଉରା ॥ ଧ୍ରୁ ॥
ପାଞ୍ଚ କେଡୁଆଲ ପଡ଼ନ୍ତେଁ ମାଙ୍ଗେ ପିଟତ[3] କାଚ୍ଛୀବାନ୍ଧୀ
ଗଅଣ ଦୁଖୋଲେଁ ସିଞ୍ଚହୁ ପାଣୀ ନ ପଇସଇ ସାନ୍ଧି ॥ ଧ୍ରୁ ॥
ଚନ୍ଦ ସୂଜ୍ଜ ଦୁଇ ଚକା ସିଠିସଂହାର ପୁଲିନ୍ଦା ।
ବାମ ଦାହିଣ ଦୁଇ ମାଗ ନ ଚେବଇ[4] ବାହତୁ ଛନ୍ଦା ॥ ଧ୍ରୁ ॥
କବଡ଼ୀ ନ ଲେଇ ବୋଡ଼ୀ ନ ଲେଇ ସୁଚ୍ଛଡ଼େ ପାର କରେଇ
ଜୋ ରଥେ ଚଡ଼ିଲା ବାହବାଣ ଜାଇ କୂଳେଁ କୂଳ ବୁଡ଼ଇ ॥ ଧ୍ରୁ ॥



---

* 'ପୋ'ଇ' ଉପରେ ଆ-କାର ।

୧. ମାଝେଁ
୨. ଯୋଗିଆ (ଟୀକା)
୩. ପିଠତ (ବା)
୪. ଚେବଇ (ବା., ଶ)

## ୧୪

### ରାଗ ରାମକ୍ରୀ

ଶାନ୍ତିପାଦାନାମ୍ ॥

ଯଅ ସମ୍ବେଅଣ ସରୁଅ ବିଆଁରେଁ ତେ ଅଲକ୍ଖଲକ୍ଖଣ ନ ଜାଇ
ଜେଜେ ଉଜୁବାଟେ ଗେଲା ଅନାବାଟା ଭଇଲା ସୋଇ ॥ ଧ୍ରୁ ॥
କୁଳେଁ କୁଳ ମା ହୋଇରେ ମୂଢ଼ା ଉଜୁବାଟ ସଂସାର
ବାଳ ଭିଣ[୧] ଏକୁ ବାକୁ[୨] ଣ ଭୂଲହ ରାଜପଥ କଣ୍ଢାର[୩] ॥ ଧ୍ରୁ ॥
ମାଆମୋହାସମୁଦାରେ ଆନ୍ତ[୪] ନ ବୁଝସି ଥାହା
ଅଗେ ନାବ ନ ଭେଲା ଦୀସଅ ଭନ୍ତି ନ ପୁଚ୍ଛସି ନାହା ॥ ଧ୍ରୁ ॥
ସୁନାପାନ୍ତର ଉହ ନ ଦିସଇ ଭାନ୍ତି ନ ବାସସି ଜାନ୍ତେ
ଏଷା[୫] ଅଟମହାସିଦ୍ଧି ସିଝଏ ଉଜୁବାଟ ଜାଅନ୍ତେ ॥ ଧ୍ରୁ ॥
ବାମ ଦାହିଣ ଦୋ ବାଟା ଛାଡ଼ୀ ଶାନ୍ତି ବୁଲଥେଉ ସଂକେଲିଉ
ଘାଟନଗୁମାଖଡ଼ତଡ଼ି ନୋ ହୋଇ ଆଖି ବୁଜିଅ ବାଟ ଜାଇଉ
॥ ଧ୍ରୁ ॥



---

ଟିକା

୨. ବାଙ୍କୁ (ସେ) ?
୩. କଣ୍ଢାର (ବା)
୪. = ଅନ୍ତ
୫. ଏଥା (ଟୀକା)

## ୧୭

### ରାଗ ଭୈରବୀ

ମହୀଧର ପାଦାନାମ୍ ।।

ତିନିଏଁ ପାଟେଁ ଲାଗେଲି ରେ ଅଣହ କପଣ ଘଣ୍ଟ ଗାଜଇ
ତା ଶୁନି ମାର ଭୟଙ୍କର ରେ ସଅ[୧] ମଣ୍ଡଳ ସଏନ[୨] ଭାଜଇ
।। ଧ୍ରୁ ।।

ମାତେଲ ଚାଅ-ଗଏନ୍ଦା ଧାବଇ ।
ନିରନ୍ତର ଗଅଣନ୍ତ ତୁଷେଁ ଘୋଳଇ ।। ଧ୍ରୁ ।।
ପାପ ପୁଣ୍ୟ ବେଣି ତିଡ଼ି ଅ ଷିକଳ ମୋଡ଼ିଅ ଖମ୍ବାଠାଣା
ଗଅଣ ଟାକଲି ଲାଗିରେ ଚିତ୍ତା ପଇଠ ଣିବାନା ।। ଧ୍ରୁ ।।
ମହାରସ ପାନେ ମାତେଲ ରେ ତିହୁଅନ ସଏଲ ଉଏଖୀ
ପଞ୍ଚବିଷୟ ରେ ନାୟକରେ ବିପଖ କୋ ବୀନ ଦେଖୀ ।। ଧ୍ରୁ ।।
ଖର ରବି କିରଣସନ୍ତାପେରେ ଗଅଣାଙ୍ଗଣ ଗଇ ପଇଠା
ଭଣନ୍ତି ମହିତ୍ତା[୩] ମଇ ଏଥୁ ବୁଡ଼ନ୍ତେ କିମ୍ପିନ ଦିଠା ।। ଧ୍ରୁ ।।

---

୧. [ଦି]ସଅ (ବା) ?
୨. ସଏଳ
୩. ମହିଅା (ବା) ?

## ୧୭

### ରଗ ପଟମଞ୍ଜରୀ

ବୀଣା ପାଦାନାମ୍ ।

ସୁଜଲଉ ସସି ଲାଗେଲୀ ତାନ୍ତୀ
ଅଣହା ଦାଣ୍ଡୀ ବାକି[୧] କିଅତ ଅବଧୂତୀ ॥ ଧ୍ରୁ ॥
ବାଜଇ ଅଲୋ ସହି ହେରୁଅ ବୀଣା
ସୁନ ତାନ୍ତି ଧନି ବିଲସଇ ରୁଣା ॥ ଧ୍ରୁ ॥
ଆଲି କାଲି ବେଣି ସାରି ସୁଣେଆ[୨]
ଗଅବର ସମରସ ସାନ୍ଧି ଗୁଣିଆ ॥ ଧ୍ରୁ ॥
ଜବେ କରହା କରହକ ଚଲେପି ଚିଉ[୩]
ବତିଶ ତାନ୍ତି ଧନି ସଏଲ ବିଆପିଉ ॥ ଧ୍ରୁ ॥
ନାଚନ୍ତି ବାଜିଲ ଗାନ୍ତି ଦେବୀ[୪]
ବୁଦ୍ଧ ନାଟକ ବିସମା ହୋଇ ॥ ଧ୍ରୁ ॥



---

୧. ଦ୍ଧି (ଶ, ସେ), ଏକି (ବା)
୨. = ସୁଣିଆ (ବା); ସୁଷିଆ (ସେ, ସୁ)
୩. = କରହକଲେ ଚିପିଉ/ପିଚିଉ
୪. ଦେଈ ?

# ୧୮

## ରାଗ ଗଉଡ଼ା

କୃଷ୍ଣବଜ୍ର ପାଦାନାମ୍ ।।

ତିଣି ଭୁଅଣ ମଇ ବାହିଅ ହେଲେଁ
ହାଉ ସୁତେଲି ମହାସୁହ ଲୀଡେଁ[1] ।। ଧ୍ରୁ ।।
କଇସଣି ହାଲୋ ଡୋମ୍ବୀ ତୋହୋରି ଭାଭରିଆଲୀ ।
ଅନ୍ତେ କୁଳିଣଜଣ ମାଝେଁ କାବାଳୀ ।। ଧ୍ରୁ ।।
ତଁଇଲୋ ଡୋମ୍ବୀ ସଅଳ ବିଟଳିଉ ।
କାଜଣ କାରଣ ସସହର ଟାଳିଉ ।। ଧ୍ରୁ ।।
କେହେ କେହୋ ତୋହୋରେ ବିରୁଆ ବୋଲଇ
ବିଦୁଜଣ ଲୋଅ ତୋରେଁ କଣ୍ଠ ନ ମେଲଇ ।। ଧ୍ରୁ ।।
କାହ୍ନେ ଗାଇତୁ କାମ ଚଣ୍ଡାଳୀ ।
ଡୋମ୍ବି ତଆଗଲି[2] ନାହି ଛିଣାଳୀ ।। ଧ୍ରୁ ।।



---

୧. ଲୀଳେଁ (ଟୀକା)
୨. = ତୋଳିତ ଅପାଲି

## ୧୯

### ରାଗ ଭୈରବୀ

କୃଷ୍ଣପାଦାନାମ୍ ॥

ଭବ ନିର୍ବାଣେ ପଡହ ମାଦଲା
ମଣ ପବଣ ବେଣି କରଣ୍ଡ କଶାଲା ॥ ଧ୍ରୁ ॥
ଜଅ ଜଅ ଦୁନ୍ଦୁହି ସାଦ ଉଛଳିଆଁ
କାହ୍ନ ଡୋମ୍ବୀ ବିବାହେ ଚଳିଆ[୧] ॥ ଧ୍ରୁ ॥
ଡୋମ୍ବୀ ବିବାହିଆ ଅହାରିଉ ଜାମ
ଜଉତୁକେ କିଅ ଆଣୁତୁ ଧାମ ॥ ଧ୍ରୁ ॥
ଅହଣିସି ସୁରଅ ପସଙ୍ଗେ ଜାଅ
ଜୋଇଣି ଜାଲେ ରଏଣି ପୋହାଅ ॥ ଧ୍ରୁ ॥
ଡୋମ୍ବୀଏର ସଙ୍ଗେ ଜୋ ଜୋଇ ରତ୍ତୋ
ଖଣହ ନ ଛାଡଅ ସହଜ ଉନ୍ମତ୍ତୋ ॥ ଧ୍ରୁ ॥



---

୧. ଚଳିଲ (ପା, ଘେ)

# ୨୦

## ରାଗ ପଟମଞ୍ଜରୀ

କୁକ୍‌କୁରୀ ପାଦାନାମ୍ ॥

ହାଉଁ ନିରସୀ ଖମଣଭତାରେ
ମୋହୋର ବିଗୋଆ କହଣ ନ ଜାଇ ॥ ଧ୍ରୁ ॥
ଫେଟଲିଉ[1] ଗୋ ମାଏ ଅନ୍ତ ଉଡ଼ି[2] ଋହିଁ
ଜାଏଥୁ ବାହାମ[3] ସୋ ଏଥୁ ନାହି ॥ ଧ୍ରୁ ॥
ପହିଲ ବିଆଣ ମୋର ବାସନପୁଡ
ନାଡି ବିଆରନ୍ତେ ସେବ ବାପୂଡା ॥ ଧ୍ରୁ ॥
ଜାଣ ଜୌବଣ ମୋର ଭଇଲେସି ପୂରା
ମୂଳ ନଖଲି[4] ବାପ ସଂଘାରା
ଭଣଥି କୁକ୍‌କୁରୀ ପାଏ[5] ଭବ ଥିରା
ଜୋ ଏଥୁ ବୁଝଏଁ ସୋ ଏଥୁ ବୀରା ॥ ଧ୍ରୁ ॥



---

୧. ଫିଟଲେଉ (ଟୀକା), ଫିଟିଲି (ଶ), ଫିଟଲେସି (ବା) ?
୨. = ଅନୁଡ଼ି
୩. ଋହାମ
୪. ନିଖଣି (ବା) ?
୫. = କୁକ୍‌କୁରୀପା ଏ

## ୨୧

### ରାଗ ବରାଡୀ

ଭୁସୁକୁ ପାଦାନାମ୍ ।

ନିସିଅ[୧] ଅନ୍ଧାରୀ ସୁସାର[୨] (?) ଚ଼ରା ।
ଅମିଅ ଭଖଅ ମୁସା କରଅ ଆହାର ॥ ଧ୍ରୁ ॥
ମାରରେ ଜୋଇଅ ମୁଯା ପବଣା ।
ଭେଣ ତୁଟଅ ଅବଣା ଗବଣା ॥ ଧ୍ରୁ ॥
ଭବ ବିନ୍ଧାରଅ ମୁସା ଖଅଣ[୩] ଗାତୀ ।
ଚଞ୍ଚଲ ମୁସା କଲିଆଁ ନାଶକ ଥାତୀ ॥ ଧ୍ରୁ ॥
କଲା[୪] ମୁଷା ଉହଣ[୫] ବାଣ ।
ଗଅଣେ ଉଠି ଚରଅ[୬] ଅମଣ ଧାଣ[୭] ॥ ଧ୍ରୁ ॥
ତବସେଁ ମୁଷା ଉଞ୍ଚଲ ପାଞ୍ଚଲ ।
ସଦ୍‌ଗୁରୁ ବୋହେ କରିହ ସୋ ନିଚ୍‌ଚଲ ॥ ଧ୍ରୁ ॥
ଜବେଁ ମୁଷା ଏର[୯] ଚ଼ୁ[୧୦] ତୁଟଅ ।
ଭୁସୁକୁ ଭଣଅ ତବେଁ ବାନ୍ଧନ ଫିଟଅ ॥ ଧ୍ରୁ ॥



---

୧ ନିଷି (ଟୀକା)
୨. ମୁଷାର
୩ ଝଣଅ
୪. କାଳ (ଟୀକା)
୫. = ଉହ ଣ
୬. କରଅ (ଟୀକା, ଜା ) ?
୭. ପାଣ (ବା) ?
୮. = ତବ ସେ
୯. = ମୁଷାସର
୧୦ ଚ଼ର

# ୨୨

## ରାଗ ଗୁଞ୍ଜରୀ

ସରହ ପାଦାନାମ୍ ।।

ଅପଣେ ରଚି ରଚି ଭବ ନିର୍ବାଣା
ମିଛେଁ ଲୋଅ ବନ୍ଧାବଏ ଅପନା ।। ଧ୍ରୁ ।।
ଅମ୍ଭେ ନ ଜାଣଁ ହୁ ଅଚିନ୍ତ ଜୋଇ
ଜାମ ମରଣ ଭବ କଇସଣ ହୋଇ ।। ଧ୍ରୁ ।।
ଜଇସୋ ଜାମ ମରଣ ବି ତଇସୋ
ଜୀବନ୍ତେ ମଅଲେଁ[1] ଣାହି ବିଶେ ସୋ ।। ଧ୍ରୁ ।।
ଜାଏଥୁ ଜାମ ମରଣେ ବିସଙ୍କା[2]
ସୋ କରଉ ରସ ରସାନେର କଙ୍ଖା[3] ।। ଧ୍ରୁ ।।
ଜେ ସଚରାଚର ତିଅସ ଭମନ୍ତି
ତେ ଅଜରାମର କିମ୍ପି ନ ହୋନ୍ତି ।। ଧ୍ରୁ ।।
ଜାମେ କାମ କି କାମେ ଜାମ
ସରହ ଭଣନ୍ତି ଅଚିନ୍ତ ସୋ ଧାମ ।। ଧ୍ରୁ ।।



---

୧. ମଇଲେଁ (ବା, ଶ) ?
୨. =ମରଣେ ବି ସଙ୍କା ?
୩. କଙ୍ଖା।

# ୨୩

## ରାଗ ବଡ଼ାରୀ

ଭୁସୁକୁ ପାଦାନାମ୍ ।।

ଜଇ ତୁମ୍ହେ ଭୁସୁକୁ ଅହେଇ[୧] ଜାଇବେ ମାରିହସି[୨] ପଞ୍ଚଜଣା
ନଲଣୀ ବନ ପଇସନ୍ତେ ହୋହିସି ଏକୁମଣା ।। ଧ୍ରୁ ।।
ଜୀବନ୍ତେ ଭେଲା ବିହଣି[୩] ମଏଲ ଣଅଣି[୪] ।
ହଣ[୫] ବିଣୁ ମାଂସେ ଭୁସୁକୁ ପଦ୍ମବଣ ପଇସହିଣି[୬] ।। ଧ୍ରୁ ।।
ମାଆଜାଲ ପସରି ଔରେ[୭] ବାଧେଲି ମାଆହରିଣୀ ।
ସଦ୍‌ଗୁରୁ ବୋହେଁ ବୁଝିରେ କାସୁ କହିନି[୮] ।। ଧ୍ରୁ ।।*



---

* ଏହାର ବୃତ୍ତି ପୃଷ୍ଠା ନାହିଁ ।

୧. ଅହେରି
୨. =ମାରିହ ସେ (ସେ) ?
୩. ବିହାଣ (ବା) ?
୪. ରଅଣି (ଶ, ବା)
୫. =[ଗ]ହଣ ବା ?
୬. =ପଇସହିଲି (ବା) ?; ଣ ପଇସିଣି (ଶ) ?
୭. =ପସରିଉ ରେ
୮. କାହିନି (ତିବ୍ବତୀ ଅନୁବାଦ, ବା)

## ୨୬

### ରାଗ ଶାବରୀ

ଶାନ୍ତି ପାଦାନାମ୍ ॥

ତୁଲା ଧୁଣି ଧୁଣି ଆଁସୁରେ ଆଁସୁ
ଆଁସୁ ଧୁଣି ଧୁଣି ଣିରବର[୧] ସେସୁ ॥ ଧ୍ରୁ ॥
ତଉଷେ[୨] ହେରୁଅ ଣ ପାବିଅଇ
ସାନ୍ତି ଭଣଇ କିଣ ସଭାବି ଅଇ[୩] ॥ ଧ୍ରୁ ॥
ତୁଲା ଧୁଣି ଧୁଣି ସୁନେ ଅହାରିଉ
ପୁନ[୪] ଲଇଆଁ ଅପଣା ଚଟାରିଉ ॥ ଧ୍ରୁ ॥
ବହଳ ବଟ[୫] ଦୁଇ ମାର[୬] ନ ଦିଶଅ
ଶାନ୍ତି ଭଣଇ ବାଳାଗ ନ ପଇସଅ ॥ ଧ୍ରୁ ॥
କାଜ ନ କାରଣ ଜଏହୁ[୭] ଜଅତି[୮]
ସଁ ଏଁ[୯] ସଁବେଅଣ ବୋଲଥି ସାନ୍ତି ॥ ଧ୍ରୁ ॥



---

୧. ଣିରବଅର (ଟୀକା, ଶ.) ?
୨. — ତଉ ଷେ
୩. — ସ ଭବିଅଇ
୪. ସୁନ (ମୁ) ?
୫. ବାଟ (ସେ); ବଦ୍ଧ (ବା) ?
୬. ଆର (ସେ)
୭. — ଜ ଏହୁ
୮. ଜୁଅତି
୯. ସଅ (ବା) ?

# ୨୨

## ରାଗ କାମୋଦ

ଭୁସୁକୁ ପାଦାନାମ୍ ।।

ଅଧରାତି ଭର କମଳ ବିକସଉ[୧]
ବତିସ ଜୋଇଣୀ ତସୁଅଙ୍ଗ ଉହ୍ଲସିଉ ।। ଧ୍ରୁ ।।
ଚାଲିଅଉ[୨] ଷଷହର ମାଗେ ଅବଧୁଇ
ରଅଣହୁ[୩] ସହଜେ କହେଇ ।। ଧ୍ରୁ ।।
ଚାଲିଅ[୪] ଷଷହର ଗଉ ଣିବାଣେଁ
କମଳିନି କମଳ ବହଇ ପଣାଳେଁ ।। ଧ୍ରୁ ।।
ବିରମାନନ୍ଦ ବିଲକ୍ଷଣ ସୁଧ ।।
ଜୋ ଏଥୁ ବୁଝଇ ସୋ ଏଥୁ ବୁଧ ।। ଧ୍ରୁ ।।
ଭୁସୁକୁ ଭଣଇ ମଇ ବୁଝିଅ ମେଳେଁ
ସହଜାନନ୍ଦ ମହାସୁହ ଲୀଳେଁ[୫] ।। ଧ୍ରୁ ।।



---

୧. ବିକସିଉ (ବା, ମୁ) ?
୨. ଚାଲିଅଉ (ବା); ଚାଲିଅ (ମୁ) ?
୩. ରଅଣ[ପଭବ]ହୁ (ବା) ?
୪. ଚାଲିଅଉ (ବା) ?
୫. ଲୀଳେଁ (ବା) ? (ଟୀକା)

## ୨୮

### ରାଗ ବଲ୍ଲାଡ଼ି

ଶବର ପାଦାନାମ୍ ।।

ଉଞ୍ଚ ଉଞ୍ଚ ପାବତ ତହିଁ ବସଇ ସବରୀ ବାଳୀ
ମୋରଙ୍ଗି ପୀଚ୍ଛ ପରହିଣ ସବରୀ ଗିବତ ଗୁଞ୍ଜରୀ ମାଳୀ ।। ଧ୍ରୁ ।।
ଉମତ ସବରେ ପାଗଳ ଶବରେ ମା କର ଗୁଳୀ
ଗୁହାଡ଼ା ତୋହୌରି
ଣିଅ ଘରିଣୀ ଣାମେ ସହଜ ସୁନ୍ଦାରୀ ।। ଧ୍ରୁ ।।
ଣାଣା ତରୁବର ମୌଳିଲରେ ଗଅଣତ ଲାଗେଲୀ ଡାଳୀ
ଏକେଲୀ ସବରୀ ଏ ବଣ ହିଣ୍ଡଇ କର୍ଣ୍ଣକୁଣ୍ଡଲବଜ୍ରଧାରୀ ।। ଧ୍ରୁ ।।
ତିଅ ଧାଉ ଖାଟ ପଡ଼ିଲା ସବରେ ମହାସୁଖେ ସେଜି ଛାଇଲୀ
ସବରେ ଭୁଜଙ୍ଗ ଣଇରାମଣି ଦାରୀ ପେମ୍ହ
ରାତି ପୋହାଇଲୀ ।। ଧ୍ରୁ ।।
ହିଅ ତାଁବୋଲା ମହାସୁହେ କାପୁର ଖାଇ
ସୁନ ନିରାମଣି କଣ୍ଠେ ଲଇଆ ମହାସୁହେ ରାତି ପୋହାଇ ।। ଧ୍ରୁ ।।
ଗୁରୁବାକ ପୁଞ୍ଛଆ ବିନ୍ଧଣିଅ ମଣେ[୧] ବାଣେଁ
ଏକେ ଶରସନ୍ଧାନେଁ ବିନ୍ଧହ ବିନ୍ଧହ ପରମ ଣିବାଣେଁ ।। ଧ୍ରୁ ।।
ଉମତ ସବରେ ଗରୁଆ ରୋଷେ
ଗିରିବର ସିହର ସନ୍ଧି ପଇସନ୍ତେ ସବରେ
ଲୋଡ଼ିବ କଇସେ ।। ଧ୍ରୁ ।।



---

୧. ଚିହ୍ନ ଣିଅ ମଣ (ବା)

## ୨୯

### ରାଗ ପଟ୍ଟମଞ୍ଜରୀ

ଲୁଇ ପାଦାନାମ୍ ।

ଭବ ନ ହୋଇ ଅଭବ ଣ ଜାଇ
ଆଇସ ସଂବୋହେଁ କୋ ପତିଆଇ ॥ ଧ୍ରୁ ॥
ଲୁଇ ଭଣଇ ବଟ[୧] ଦୁଲକ୍ଖ ବିଣାଣା
ତିଅ ଧାଏ ବିଲସଇ ଉହ ଲାଗେ ଣା[୨] ॥ ଧ୍ରୁ ॥
ଜାହେର ବାନ ଚିହ୍ନ ରୁବ ଣ ଜାଣୀ
ସୋ କଇସେ ଆଗମ ବେଏଁ ବଖାଣୀ ॥ ଧ୍ରୁ ॥
କାହେରେ କିଷଭଣୀ ମଇ ଦିବି ପିରିଚ୍ଛା
ଉଦକ ଚନ୍ଦ ଜିମ ସାଚ ନ ମିଚ୍ଛା ॥ ଧ୍ରୁ ॥
ଲୁଇ ଭଣଇ[୩] ଭଇବ କୀଷ୍
ଜାଲଇ ଅଚ୍ଛମତା ହେର[୪] ଉହ ଣ ଦିସ୍ ॥ ଧ୍ରୁ ॥



---

୧. ଟିଣ୍ଟ
୨. ନ ଡାଣା/ଠାଣା (ସେ) ?
୩ [ମଇ]
୪. = ଅଚ୍ଛମ ତାହେର

## ୩୦

### ରଗ ମଲ୍ଲାରୀ

ଭୁସୁକୁ ପାଦାନାମ୍ ।।

କରୁଣ ମେହ ନିରନ୍ତର ଫରିଆ
ଭବାଭବ ଦ୍ୱନ୍ଦଲ ଦଲିଆ ।। ଧ୍ରୁ ।।
ଉଇଆ ଗଅଣ ମାଝେଁ ଅଦଭୂଆ
ପେଖରେ ଭୁସୁକୁ ସହଜ ସରୁଆ ।। ଧ୍ରୁ ।।
ଜାସୁ ସୁନନ୍ତେ[୧] ତୁଟଇ ଇନ୍ଦିଆଲ
ନିହୁରେ[୨] ଣିଅ ମନ ଣ ଦେ ଉଲ୍ଲାସ[୩] ।। ଧ୍ରୁ ।।
ବିସଅ ବିଶୁଦ୍ଧି ମଇ ବୁଝିଅ ଆନନ୍ଦେ ।
ଗଅଣହ ଜିମ ଉଜୋଲି ଚାନ୍ଦେ ।। ଧ୍ରୁ ।।
ଏ ତୈଲୋଏ ଏତ ବିଷାର[୪]
ଜୋଇ ଭୁସୁକୁ ହେବ୍‌ଭଇ[୫] ଅନ୍ଧକାର ।। ଧ୍ରୁ ।।



---

୧. ମୁଣନ୍ତେ (ଶ), ଗୁଣନ୍ତେ (ସେ) ?
୨. ନିହୁଏ (ଟୀକା)
୩. ମଣ ଦେଅ ଉଲାଳ (ବା), ମଣ ଦେ ଉଲ୍ଲାସ (ମୁ) ?
୪. ଏତବି ଷାର (ସେ) ?
୫. ଫେଟଇ (ଶ), ଫେଡ଼ଇ (ବା)

## ୩୧

### ରାଗ ପଟମଞ୍ଜରୀ

ଆର୍ଯ୍ୟ ଦେବ ପାଦାଃ ॥

ଜହି ମଣ ଇନ୍ଦିଅ (ପ)ବଣ ହୋଣ ଠା[1]
ଣ ଜାନମି ଅପା କହିଁ ଗଇ ପଇଠା ॥ ଧ୍ରୁ ॥
ଅକଟ କରୁଣା ଡମରୁଲି ବାଜଅ
ଆଜଦେବ ଣିରାସେ[2] ରାଜଇ ॥ ଧ୍ରୁ ॥
ଚାନ୍ଦରେ ଚାନ୍ଦକାନ୍ତି ଜିମ ପଡିଭାସଅ
ଚିଅ ବିକରଣେ ତହ୍ନିଟଲି ପଇସଇ ॥ ଧ୍ରୁ ॥
ଛାଡିଅ[3] ଭୟ ଘିଣ ଲୋଆଚାର
ଚାହନ୍ତେ ଚାହନ୍ତେ ସୁଣ ବିଆର ॥ ଧ୍ରୁ ॥
ଆଜଦେବେଁ ସଅଳ ବିହରିଉ[4]
ଭୟଘିଣ ଦୂର ଣିବାରିଉ ॥ ଧ୍ରୁ ॥



---

୧. ପବଣ ହୋଇ ଣଠା (ବା)
୨. ଣିରାଲେ (ସେ) ?
୩. ଛାଡ଼ିଲ (ଟୀକା)
୪. ବିହ୍ଵଲିଉ (ସେ), ବିଆଡିଉ (ବା) ?

# ୩୨

## ରାଗ ଦେଶାଖ

ସରହ ପାଦାନାମ୍ ।।

ନାଦ ନ ବିନ୍ଦୁ ନ ରବି ନ ଶଶି ମଣ୍ଡଳ
ଚିଅରାଅ ସହାବେ ମୁକଳ ।। ଧ୍ରୁ ।।
ଉଜୁ ରେ ଉଜୁ ଛାଡ଼ି ମା ଲେହୁରେ ବାଙ୍କ ।
ନିଅହ୍ନି[1] ବୋହି ମା ଜାହୁରେ ଲାଙ୍କ ।। ଧ୍ରୁ ।।
ହାଥେରେ କାଙ୍କାଣ ମା ଲୋଉ[2] ଦାପଣ ।
ଆପଣେ ଅପା ବୁଝତୁ ନିଅମଣ ।। ଧ୍ରୁ ।।
ପାର ଉଆରେଁ ସୋଇ ଗଜିଇ[3] ।
ଦୁଜ୍ଜଣ ସାଙ୍ଗେ ଅବସରି ଜାଇ ।। ଧ୍ରୁ ।।
ବାମ ଦାହିଣ ଜୋ ଖାଲ ବିଖଲା
ସରହ ଭଣଇ ବପା ଉଜୁବାଟ ଭଇଲା ।। ଧ୍ରୁ ।।



---

୧. ନିଅଡ଼ି
୨. ଲୋଡ଼ (ସେ), ଲେଉ/ହୁ (ଶ, ବା)
୩. ସାଂଝଇ (ଶ), ମଜ୍ଝିଇ (ବା)

## ୩୩

### ରାଗ ପଟମଞ୍ଜରୀ

ଢେଣ୍ଢଣ ପାଦାନାମ୍ ।।

ଟାଲତ ମୋର ଘର ନାହି ପଡବେଷୀ ।
ହାଡୀତ ଭାତ ନାହିଁ ନିତି ଆବେଶୀ ।। ଧ୍ରୁ ।।
ବେଙ୍ଗ (ଗ) ସଂସାର[୧] ବଡ଼ହିଲ ଜାଅ ।
ଦୁହିଲ ଦୁଧୁ କି ବେଣ୍ଟେ ଷାମାୟ ।।
ବଳଦ ବିଆଏଲ ଗବିଆ ବାଁଝେ ।।
ପିଟା ଦୁହିଏ[୨] ଏ ତିନା ସାଁଝେ ।।
ଜୋସୋ ବୁଧୀ ସୋ ଧନି ବୁଧୀ[୩] ।
ଜୋ ଷୋ ଚୌରି ସୋଇ ସାଧୀ[୪] ।।
ନିତେନିତେ ଷିଆଲା ଷିହେ ଷମ ଜୁଝଅ ।
ଢେଣ୍ଢଣ ପାଏର ଗୀତ ବିରଳେ* ବୁଝଅ ।।



---

* ବିରଳେ ସ୍ଥଳେ ପୋଥିରେ ବିଠଠିଲେ ଅଛି ।

୧. ବେଙ୍ଗସ ସାପ (ବା) ?
୨. ଦୁହିଅଇ (ବା) ?
୩. ଯୋଧ ନିବୁଧୀ (ବା), ଯୋଇ ନିବୁଧୀ (ମୁ), ସୌ ଧନି ବୁଧୀ (ସେ) ?
୪. ସୌ ଦୁଷାଧୀ (ସେ) ?

## ୩.୪

### ରାଗ ବରାଡ଼ୀ

ଡାରିକ ପାଦାନାମ୍ ॥

ସୁନ କରୁଣରି[୧] ଅଭିନ ବାରେଁ[୨] କାଅବାକ୍‌ଚିଅ
ବିଲସଇ ଡାରିକ ଗଅଣତ ପାରିମ କୁଲେଁ ॥ ଧ୍ରୁ ॥
ଅଲକ୍ଷଲକ୍ଷଚିଏଁ। ମହାସୁହେ
ବିଲସଇ ଡାରିକ ଗଅଣତ ପାରିମକୁଲେଁ ॥ ଧ୍ରୁ ॥
କିନ୍ତୋ ମନ୍ତେ କିନ୍ତୋ ତନ୍ତେ କିନ୍ତୋରେ ଝାଣବଖାନେ ।
ଅପଇଠାନ ମହାସୁହଲୀଣେ[୩] ଦୁଲକ୍ଖ ପରମନିବାଣେଁ ॥ ଧ୍ରୁ ॥
ଦୁଖେଁ ସୁଖେଁ ଏକୁ କରିଆ ଭୁଞ୍ଜଇ ଇନ୍ଦୀଜାନୀ
ସ୍ୱପରାପର ନ ଚେବଇ ଡାରିକ ସଅଲାନୁତ୍ତର ମାଣୀ ॥ ଧ୍ରୁ ॥
ରାଆ ରାଆ ରାଆରେ ଅବର ରାଅ ମୋହେରା[୪] ବାଧା
ଲୁଇ ପାଅପଏ ଡାରିକ ଦ୍ୱାଦଶଭୁଅଣେଁ ଲଧା ॥ ଧ୍ରୁ ॥



---

୧. କରୁଣ ରେ (ଶ, ବା)
୨. ରୂରେଁ
୩. ଲୀନେଁ (ଟୀକା)
୪. = ମୋହେ ରେ

# ୩୫

## ରାଗ ମଲ୍ହାରୀ

ଭେଦ ପାଦାନାଂ

ଏତକାଳ ହାଁଓ ଅଛିଲେଁ ସୁ ମୋହେଁ[1] ।
ଏବେ ମଇ ବୁଝିଲ ସଦ୍‌ଗୁରୁବୋହେଁ ।। ଧ୍ରୁ ।।
ଏବେଁ ଚିଅରଅ ମୁକୁଁ ଣ ଠା[2]
ଗଣ[3]ସମୁଦେ ଟଲିଆ ପଇଠା ।। ଧ୍ରୁ ।।
* .... .... .... ....
ବାଜୁଲେ ଦିଲ ମୋହକଖୁଁ[4] ଭଣିଆ
ମଇ ଅହାରିଲ ଗଅଣତ ପଣିଆଁ ।। ଧ୍ରୁ ।।
ଭେଦ ଭଣଇ ଅଭଗେ ଲଇଆ ।
ଚିଅରଅ ମଇ ଅହାର କଏଲ ।। ଧ୍ରୁ ।।
* { ପେଖମି ଦହଦିହ ସର୍ବଇ ଶୁନ
ଚିଅ ବିହୁନେ ପାପ ନ ପୁନ ।। ଧ୍ରୁ ।।



---

* ଭେଦ ଘରେ ପୋଥିରେ ଏବେ ଅଛି ।

୧. ଅଛିଲେସୁଁ ମୋହେ (ସେ) ?
୨. ମକୁ ଣଠା (ସେ), ମୋକୁ ଣଠା (ବା)
୩. = ଗ[ଅ]ଣ
୪. ଲକ୍‌ଖୁ (ବା) ?

## ୩୬

### ରାଗ ପଟମଞ୍ଜରୀ

କୃଷ୍ଣାର୍ଯ୍ୟ ପାଦାନାମ୍ ।।

ସୁଣ ବାହ ତଥତା ପହାରୀ
ମୋହଭଣ୍ଡାର ଲୁଇ[୧] ସଅଲା ଅହାରୀ ।। ଧ୍ରୁ ।।
ଘୁମଇ ଣ ଚେବଇ ସପର ବିଭାଗା ।
ସହଜ ନିଦାଳୁ କାହ୍ନିଲ ଲାଙ୍ଗା ।। ଧ୍ରୁ ।।
ଚେଅଣ ଣ ବେଅନ ଭର ନିଦ ଗେଲା ।
ସଅଲ ସୁଫଲ[୨] କରି ସୁହେ ସୁତେଲା ।। ଧ୍ରୁ ।।
ସ୍ୱପଣେ ମଇ ଦେଖିଲ ତିହୁବଣ ସୁଣ
ଘୋରିଅ[୩] ଅବଣା ଗମଣ ବିହଣ[୪] ।। ଧ୍ରୁ ।।
ଶାଖି[୫] କରିବ ଜାଲନ୍ଧରି ପାଏ
ପାଖି ଣ ରାହଅ[୬] ମୋରି ପାଣ୍ଡିଆ ଚାଦେ[୭] ।। ଧ୍ରୁ ।।



---

* ସୁଣ ବାହ ସ୍ଥଳେ ସୁଣବାହ, ଅହାରୀ ସ୍ଥଳେ ଆହାରୀ ପୋଥିରେ ଅଛି ।

୧. ଲଇ
୨. ସୁକଳ (ତିବ୍ବତୀ ଟୀକାନୁସାର ଶ., ବା) ?
୩. ଘାଣିକ (ଟୀକା), ଘୋଳିଅ (ଶ., ବା) ?
୪. ବିହୁନ
୫. ଶାଖି (ଟୀକାନୁସାର)
୬. ରହଅ (ଶ., ବା) ?
୭. ପାଣ୍ଡିଆଚାଏ

# ୩୭

## ରାଗ କାମୋଦ

ତାଡକ ପାଦାନାମ୍ ।।

ଅପଣେ ନାହି ସୋ[1] କାହେରି ଶଙ୍କା
ତା ମହାମୁଦେରୀ ଟୁଟିଗେଲି କଂଖା । ଧ୍ରୁ ।।
ଅନୁଭବ ସହଜ ମା ଭେଲରେ ଜୋଇ
ଚୌକୋଟି ବିମୁକା ଜଇସୋ ତଇସୋ ହୋଇ ।। ଧ୍ରୁ ।।
ଜଇସନେ ଅଛିଲେ ସ[2] ତଇଛେନ ଅଛ ।
ସହଜ ପିଥକ[3] ଜୋଇ ଭାନ୍ତି ମାହୋ[4] ବାସ ।। ଧ୍ରୁ ।।
ବାଣ୍ଡ କୁରୁ[5] ସନ୍ତାରେ ଜାଣୀ ।
ବାକ୍ ପଥାତୀତ କାହିଁ ବଖାଣୀ ।। ଧ୍ରୁ ।।
ଭଣଇ ତାଡକ ଏଥୁ ନାହିଁ ଅବକାଶ ।
ଜୋ ବୁଝଇ ତା ଗଲେଁ ଗଳପାସ ।। ଧ୍ରୁ ।।



---

୧. ମୋ (ସେ) ?
୨. =ଅଚ୍ଛିଲେସ; ଇଚ୍ଛିଲେସି (ବା) ?
୩. ପଥକ (ଶ., ବା, ସେ) ?
୪. ନାହି (ବା) ?
୫. ବାଣ୍ଡ କୁରୁ [ଣ୍ଡ]

# ୩୮

## ରାଗ ଭୈରବୀ

ସରହ ପାଦାନାମ୍ ॥

କାଅ ଣାବଡ଼ି ଖାଣ୍ଟି[୧] ମଣ କେଡ଼ୁଆଲ
ସଦ୍‌ଗୁରୁ ବଅଣେ ଧର ପତବାଲ ॥ ଧ୍ରୁ ॥
ଚୀଅ ଥିର କରି ଧହୁରେ[୨] ନାହୀ
ଅନ ଉପାୟେ ପାରଣ ଜାଇ ॥ ଧ୍ରୁ ॥
ନୌବାହୀ ନୌକା ଟାଗୁଅ[୩] ଗୁଣେ
ମେଲି ମେଲ ସହଜେଁ ଜାଉଣ ଆଣେଁ ॥ ଧ୍ରୁ ॥
ବାଟ ଅଉଅ[୪] ଖାଣ୍ଟ ବି ବଲଆ
ଭବ ଉଲୋଲେଁ ଷଅ[୫] ବି ବୋଲିଆ ॥ ଧ୍ରୁ ॥
କୁଳ ଲଇ ଖରେ ସୋନ୍ତେ ଉଜାଅ
ସରହ ଭଣଇ ଗଣେଁ[୬] ପମାଏଁ[୭] ॥ ଧ୍ରୁ ॥



---

୧. ଖଣ୍ଟୀ (ଟୀକା) ?
୨. ଧ[ର]ହୁ
୩. ଟାଣଅ (ବା)
୪. ବାଟତ (ଟୀକା), ବାଟଭ ଭଅ ?
୫. [ବି]ଷଅ (ସେ), ସବ (ବା) ?
୬. ଗ[ଅ]ଣେଁ
୭. ସମାଅ (ବା) ?

## ୩୯

### ରାଗ ମାଳଶୀ

ସରହ ପାଦାନାମ୍ ॥

ସୁଇଣା[୧] ହ ଅବିଦାରଅରେ[୨] ନିଅମନ ହୋହୋରେଁହୋସେ
ଗୁରୁ ବଅଣ ବିହାରେଁରେ ଥାକିବ ତଇ ଘୁଣ୍ଡ କଇସେ ॥ ଧ୍ରୁ ॥
ଅକଟ ହୁଁ ଭବଇ ଅଣା[୩]
ବଙ୍ଗେ ଜାୟା ନିଳେସି ପରେ ଭାଗେଲ ତୋହାର ବିଣାଣା ॥ ଧ୍ରୁ ॥
ଅଦଅଭୁଅ[୪] ଭବ ମୋହାରେ ଦିସଇ ପର ଅପ୍ୟଣା
ଏ ଜଗ ଜଳବିମ୍ବକାରେ ସହଜେଁ ସୁଣ ଅପଣା ॥ ଧ୍ରୁ ॥
ଅମିୟା ଅଚ୍ଛନ୍ତେ ବିସ ଗିଳେସିରେ ଚିଅ ପରବ ବସ[୫] ଅପା
ଘାରେଁ ପାରେଁ କା ବୁଝିଲେ ମରେ[୬] ଖାଇବ ମଇ ଦୁଠ
କୁଣ୍ଡବା ॥ ଧ୍ରୁ ॥
ସରହ ଭଣନ୍ତି ବର ସୁଣ ଗୋହାଳୀ କିମୋ[୭] ଦୁଠ୍ୟ ବଳନ୍ଦେଁ
ଏକେଲେ ଜଗ ନାଶିଅ ରେ ବିହରୁଁ ଛନ୍ଦେଁ[୮] ॥ ଧ୍ରୁ ॥



---

୧. ସୁଇନେ (ଟୀକା)
୨. ହି[ଭଣ]ଅ ବିଦାରଅ ରେ (ବା), ଅବିଦାର ଅରେ (ଶ) ?
୩. ଅକଟ ହୁଁ ଭବ ଗଅଣା; ଅକଥ ? (ପ୍ର ସେନ); ଅକଟହୁଁ ଭବଗଅଣା ?
୪. ଅଦଭୁଅ
୫ ଚିଅ ପରବସ
୬. = ବୁଝିଲେମ ରେ ?, ବୁଝିଲେ ମାରି (ବା) ?, = ବୁଝିଲେ ମ ରେ (ସେ) ?
୭. = କି ମୋ
୮. ବିହରହୁଁ ଛନ୍ଦେ (ସେ), ସୁଛନ୍ଦେ ବା)

# ୪୦

## ରାଗ ମାଳଶୀ ଗବୁଡା

କାହ୍ନୁ ପାଦାନାମ୍ ॥

ଜୋ ମଣ ଗୋଏର[1] ଆଲ ଜାଲ
ଆଗମ ପୋଥୀ ଇଷ୍ଟାମାଳା[2] ॥ ଧ୍ରୁ ॥
ଭଣ କଇସେଁ ସହଜ ବୋଲ ବା[3] ଜାୟ
କାଅବାକ୍‌ଚିଅ ଜସୁ ଣ ସମାୟ ॥ ଧ୍ରୁ ॥
ଆଲେ ଗୁରୁ ଉଏସଇ ସୀସ
ବାକ୍‌ପଥାତୀତ କାହିବ କୀସ୍ ॥ ଧ୍ରୁ ॥
ଜେ ତଇ ବୋଲୀ ତେ ତବି ଟାଳ[4]
ଗୁରୁ ବୋଧସେ[5] ସୀସା କାଳ ॥ ଧ୍ରୁ ॥
ଭଣଇ କାହ୍ନୁ ଜିଣରଅଣ ବିକସଇ ସା[6]
କାଲେଁ ବୋବ ସଂବୋହିଅ ଜଇସା ॥ ଧ୍ରୁ ॥



---

୧. ଗୋଅର (ବା)
୨. ଇଟ୍‌ଠାମାଳା (ଶ), ଟଣ୍ଟାମାଳା (ସେ) ?
୩. = ବୋଲବା
୪. — ଜେତଇ ବୋଲି ତେତ ଟିଟାଳ
୫. ବୋବ ସେ
୬. — ବି କଇସା

# ୪୧

## ରାଗ କହ୍ନ ଗୁଂଜରୀ

ଭୁସୁକୁ ପାଦାନାମ୍ ।

ଆଇଏ ଅଣୁଅନାଏ ଜଗରେ ଭାଂତି ଏଁ ସୋ[୧] ପଡିହାଇ
ରାଜ ସାପ ଦେଖି ଜୋ ଚମକିଇ ଷାରେ[୨] କିଂ
ତଂ(କଂ)[୩] ବୋଡୋ ଖାଇ ॥ ଧ୍ରୁ ॥
ଅକଟ ଜୋଇଆରେ ମା କର ହଥା ଲୋହ ଣା
ଆଇସ ସଭାବେଁ ଜଇ ଜଗ ବୁଝସି ତୁଟ[୪]
ବାସଣାତୋର ॥ ଧ୍ରୁ ॥
ମରୁମରୀ ଚି ଗନ୍ଧନଇରୀଦାପଡିବିମ୍ବୁ[୫] ଜଇସା ।
ବାତାବତ୍ତେଁ ସୋ ଦିଟ[୬] ଭଇଆ ଅପେ ପାଥର ଜଇସା ॥ ଧ୍ରୁ ॥
ବାଁଝିସୁଆ ଜିମ କେଳି କରଇ ଖେଳଇ ବହୁବିହ ଖେଡା
ବାଲୁଆ ତେଲେଁ ସସରସିଂଗେ ଆକାଶ[୭] ଫୁଲିଲା ॥ ଧ୍ରୁ ॥
ରାଉତୁ ଭଣଇ କଟ ଭୁସୁକୁ ଭଣଇ କଟ ସଅଳା ଅଇସ ସହାବ ।
ଜଇ ତୋ ମୂଢା ଅଚ୍ଛସି ଭାନ୍ତୀ ପୁଚ୍ଛତୁ ସଦ୍ଗୁରୁ ପାବ ॥ ଧ୍ରୁ ॥



---

୧. = ଅଣୁଅନା ଏ ଜଗ ରେ ଭାଂତିଏଁ ସୋ
୨. ଷାଚେ
୩. (କଂ) ଭୁଲପାଠ ।
୪. ତୁଟଇ (ବା)
୫. ଗନ୍ଧ[ବ]ନଇଆ ଦା[ପନ] ପଡିବିମ୍ବୁ
୬. ଦିଢ଼
୭. ଆକା[ଶେ]ଶ ( ବା, ସେ) ?

# ୪୨

## ରାଗ କାମୋଦ

କାହ୍ନୁ ପାଦାନାଂ

ଚିଅ ସହଜେ ଶୁଣ ସଂପୁନ୍ନା
କାନ୍ଧ ବିୟୋଏ ମା ହୋହି ବିସନ୍ନା ॥ ଧ୍ରୁ ॥
ଭଣ କଇସେ କାହ୍ନୁ ନାହି
ଫରଇ ଅନୁଦିନଂ ତୈଲୋଏ ପମାଇ ॥ ଧ୍ରୁ ॥
ମୂଢ଼ା ଦିଠନାଠ ଦେଖି କାଅର
ଭଗତରଙ୍ଗ[୧] କି ସୋଷଇ ସାଅର ॥ ଧ୍ରୁ ॥
ମୂଢ଼ା ଅଚ୍ଛନ୍ତେ ଲୋଅ ନ ପେଖଇ ।
ଦୁଧ ମାଝେଁ ଲଡ ଣଚ୍ଛଂତେଁ[୨] ଦେଖଇ ॥ ଧ୍ରୁ ॥
ଭବ ଜାଇଣ[୩] ଆବଇ ଏଥୁ କୋଇ ।
ଆଇ ସ ଘବେ ବିଳସଇ କାହ୍ନିଲ ଜୋଇ ॥ ଧ୍ରୁ ॥



---

* ସାଅର ସ୍ଥଳେ ପୋଥିରେ ଅଚ୍ଛି ସାରଅର

୧. ଭଙ୍ଗ (ବା)
୨. = ଣ ଛଂତେଁ, ଛଂତେଁ [ଣ] (ଚେ) ?
୩ = ଜାଇ ଣ

# ୪୩

## ରାଗ ବଙ୍ଗାଳ

ଭୁସୁକୁ ପାଦାନାଂ ॥

ସହଜ ମହାତରୁ ଫରିଅଏ[୧] ତେଲୋଏ
ଖସମସଭାବେ ରେ ବାଣତ କା କୋଏ[୨] ॥ ଧ୍ରୁ ॥
ଜିମ ଜଳେ ପାଣିଆ ଟଳିଆ ଭେଡ[୩] ନ ଜାଅ
ତିମ ମରଣ ଅଅଣାରେ[୪] ସମରସେ ଗଅଣ ସମାଅ ॥ ଧ୍ରୁ ॥
ଜତ୍ସୁଣାହି ଅଧ୍ୟାତା ସୁପରେଲ୍[୫] କାହି
ଆଇ ଅନୁଅଣାରେ ଜାମମରଣଭବ ଣାହି ॥ ଧ୍ରୁ ॥
ଭୁସୁକୁ ଭଣଇ କଟ ରାଉତୁ ଭଣଇ କଟ ସଅଳା ଏହ ସହାବ
ଜାଇ ଣ ଆବଯି ରେ ଣ ତଂହି ଭାବାଭାବ ॥ ଧ୍ରୁ ॥



* ଟୀକା ଅର୍ଥ ଅନୁସାରେ ମରଣ ଅଅଣା ସ୍ଥଳେ ମଣରଅନା ହେବ ।

୧. ଫରିଅ ଏ; ଫରିଓା ଏ (ସେ) ?
୨. [ମୁ]କା (ବା), ବା[ଧ]ଣତ [ମୁ]କା (ମୁ), ବାଣତକା କୋଏ (ସେ) ?
୩. ଭେଡ; ଭେଡନ (ସେ) ?
୪. ମଣ ରଅଣା ରେ
୫. ଜାସୁ ଣାହି ଅପ୍ପା ତାସୁ ପରେଲ; ତାସୁ = ତା ସ୍ୱ (ମୁ) ?

# ୪୪

## ରାଗ ମଲ୍ଲାରୀ

କୌଙ୍କଣ ପାଦାନାଂ ॥

ସୁନେସୁନ ମିଳିଆ[1] ଜବେଁ
ସଅଳଧାମ ଭଇଆ ତବେଁ ॥ ଧ୍ରୁ ॥
ଆଜୁ ହୁଁ[2] ଚଉଷଣ ସଂବୋହୀ
ମାଝ ନିରେହ[3] ଅଣୁଅର ବୋହୀ ॥ ଧ୍ରୁ ॥
ବିନ୍ଦୁଣାଦ ଣହିଁ ଏ[4] ପଇଠା
ଅଣ ରହନ୍ତେ ଆଣ ବିଣଠା ॥ ଧ୍ରୁ ॥
ଜଥାଁ ଆଇଲେଁସି ତଥା ଜାନ
ମାସଂ[5] ଥାକୀ ସଅଳ ବିହାଣ ॥ ଧ୍ରୁ ॥
ଭଣଇ କଙ୍କଣ କଲ ଏଲ ସାଦେଁ
ସର୍ବ ବିଛରିଲ[6] ତଧତା[7]ନାଦେଁ ॥ ଧ୍ରୁ ॥



---

୧. ମିଳିଓ। (ସେ) ?
୨. ଅଜହୁଁ (ବା, ସେ) ?
୩. ନିରେହେଁ (ବା, ସେ) ?
୪. ବିଂଦୁନାଦ ନ ହିଏଁ
୫. ମାଝେଁ (ତିବତୀ ଟୀକାନୁସାର)
୬. ବି ଛରିଲ (ବା), ବିଚ୍ଚରିଲ (ସେ) ?
୭. ତଥତା।

## ୪୮

### ରାଗ ମଲ୍ଲାରୀ

କାହ୍ନୁ ପାଦାନାଂ ॥

ମଣ ତରୁ ପାଞ୍ଚ ଇନ୍ଦି ତସୁ ସାହା
ଆସା ବହଲ ପାତ ଫଳାହା (ହ ବାହା)[1] ॥ ଧ୍ରୁ ॥
ବର ଗୁରୁବଅଣେ କୁଠାରେଁ ଛିଜଅ
କାହ୍ନ ଭଣଇ ତରୁ ପୁଣ ନ ଉଇଜଅ ॥ ଧ୍ରୁ ॥
ବାଟଇ[2] ସୋ ତରୁ ସୁଭାସୁଭ ପାଣୀ
ଛେବଇ ବିଦୁଜନ ଗୁରୁ ପରିମାଣୀ ॥ ଧ୍ରୁ ॥
ଜୋ ତରୁ ଛେବ ଭେବଉ[3] ନ ଜାଣଇ
ସଡି ପଡିଆଁ ରେ ମୂଢ ତା ଭବ ମାଣଇ ॥ ଧ୍ରୁ ॥
ସୁ (ନ) ତରୁ[4] ଗଅଣ କୁଠାର
ଛେବହ ସୋ ତରୁ ମୂଳ ନ ଡାଳ ॥ ଧ୍ରୁ ॥



---

୧. ଫଳବାହା (ବା), ପାତହ ବାହା (ସେ) ?
୨. ବାଢ଼ଇ
୩. ଭେଉ (ବା, ମୁ)
୪. ତରୁବେର (ଟୀକା)

# ୪୭

## ରଗ ଶବରୀ

ଜୟନନ୍ଦୀ ପାଦାନାଂ ।।

ପେଖୁ[1] ସୁଅଣେ ଅଦଶ ଜଇସା
ଅନ୍ତରାଳେ ମୋହ[2] ତଇସା ।। ଧ୍ରୁ ।।
ମୋହ(ଦ) ବିମୁକ୍‌କା ଜଇ ମାଣା[3]
ତବେଁ ତୁଟଇ ଅବଣା ଗମଣା ।। ଧ୍ରୁ ।।
ନୌ ଦାଟଇ[4] ନୌ ତିମଇ ନ ଛିଜଇ
ପେଖ[5] ମୋ'ହେ ବଲିବଲି ବାଝଇ ।। ଧ୍ରୁ ।।
ଛାଅ ମାଆ କାଅ ସମାଣା
ବେଣି ପାଖେଁ ସୋଇ ବିଣା[6] ।। ଧ୍ରୁ ।।
ଚିଅ ତଥତାସୁଭାବେ ଷୋହିଅ
ଭଣଇ ଜଅନନ୍ଦି ଫୁଡଅଣ[7] ଣ ହୋଇ ।। ଧ୍ରୁ ।।



---

୧. ପେଖଇ (ଟୀକା)
୨. ସୋ ହବ (ବା) ଅର୍ଥ : ସ ଭବଃ ?
୩ ମଣା (ଟୀକା)
୪. ଦାଜ୍ଝଇ
୫. [ମୋଧ] (ବା); [ମୋଅ/ଲୋଅ] (ସେ), [ମାଆ] (ମୁ) ?
୬. ବି [ଣା]ଣା (ବା); ବି[ଣା]ଣା (ମୁ) ?
୭. =ଫୁଡ଼ ଅ[।]ଣ

# ୪୨

ଗୁଞ୍ଜରୀ ପାଦାନାଂ ॥

କମଳ କୁଳିଶ ମାଝେଁ ଭଇମ ମିଅଳୀ[୧]
ସମତା ଜୋଏଁ ଜଳିଅ ଚଣ୍ଡାଳୀ ॥ ଧ୍ରୁ ॥
ଡାହ ଡୋମ୍ବୀଘରେ ଲଗେଲି ଆଗି
ସହଶଲି[୨] ଲଇ ଷିଞ୍ଚ ହୁଁ ପାଣୀ ॥ ଧ୍ରୁ ॥
ନଉ ଖର ଜ୍ୱାଳା ଧୁମ ନ ଦିଶଇ
ମେରୁ ଶିଖର ଲଇ ଗଅଣ ପଇସଇ ॥ ଧ୍ରୁ ॥
ଫାଟଇ[୩] ହରିହର ବାହ୍ମ ଭଡ଼[୪]
ଫାଟା[୫] ହଇ ଣବଗୁଣ ଶାସନ ପଡ଼ା ॥ ଧ୍ରୁ ॥
ଭଣଇ ଧାମ ଫୁଡ ଲେଙ୍ଗୁରେ[୬] ଜାଣୀ
ପଞ୍ଚନାଳେଁ ଉଠେ[୭] ଗେଲ ପାଣୀ ॥ ଧ୍ରୁ ॥



---

୧. ଭବଇ ଲେଲୀ (ବା), ଭଇଅ (ମ) ମିଅଳୀ (ମୁ), ଭଇ ମ ମିଅଳୀ (ସେ) ?
୨. ସସହର (ଟୀକା)
୩. ଦାଢ଼ଇ (ଟୀକା)
୪. ଭଡ଼ାର (ବା), ଭଡ଼ା ?
୫. ଫାଟା (ସେ), ଦାଢ୍ଧା (ମୁ), ଦାଢ଼ଇ (ବା)
୬. ଲେହୁ ରେ
୭. ଉଠି (ସେ)

# ୪୯

## ରାଗ ମଲ୍ଲାରୀ

ଭୁସୁକୁ ପାଦାନାଂ ॥

ବାଜ[1]ଣାବ ପାଡ଼ୀ ପଁଉଆ ଖାଲେଁ ବାହିଉ
ଅଦଅବଙ୍ଗାଲେ[2] କ୍ଲେଶ[3] ଲୁଡ଼ିଉ ॥ ଧ୍ରୁ ॥
ଆଜି ଭୁସୁ[4] ବଙ୍ଗାଲୀ ଭଇଲୀ
ଣିଅ ଘରଣୀ ଚଣ୍ଡାଲୀ[5] ଲେଲୀ ॥ ଧ୍ରୁ ॥
ଡହି ଜୋ[6] ପଞ୍ଚଧାଟ ଣଇ ଦିବି ସଂଜ୍ଞା ଣଠା
ଣ ଜାନମି ଚିଅ ମୋର କହିଁ ଗଇ ପଇଠା ॥ ଧ୍ରୁ ॥
ସୋଣ ତରୁଅ[8] ମୋର କିମ୍ପି ଣ ଥାକିଉ
ନିଅ ପରିବାରେ ମହାସୁହେ[9] ଥାକିଉ[10] ॥ ଧ୍ରୁ ॥
ଚଉକୋଡ଼ି ଭଣ୍ଡାର ମୋର ଲଇଆ ସେସ
ଜୀବନ୍ତେ ମଇଲେଁ ନାହି ବିଶେଷ ॥ ଧ୍ରୁ ॥



---

* ପୋଥିରେ ଦଙ୍ଗାଲେ ଦ୍ରେଶ

୧ ରଜ (ତିବତୀ ଅନୁବାଦ)
୨. ଦଙ୍ଗାଲେ (ସେ)
୩. ଦ୍ରେଶ/ଦେଶ (ବା, ଦେ) ?
୪. ଭୁସୁ[କୁ]
୫. ଚଣ୍ଡାଲୀ (ଟୀକା) ?
୬. ଡହିଅ (ଟୀକା)
୭. ପଞ୍ଚପାଟଣ ଇନ୍ଦ ବିସଆ
୮. = ସୋଣ ତ ରୁଅ
୯. ମହାନେହେ (ସେ) ?
୧୦. ବୁଦ୍ଧି ଉ (ଟୀକାନୁସାର, ବା) ?

# ୪୦

## ରାଗ ରାମକ୍ରୀ

ଶବର ପାଦାନାମ୍ ॥

ଗଅଣତ ଗଅଣତ ତଇଲା ବାଡ୍‌ହୀ[୧] ହେଞ୍ଚେ[୨] କୁରାଡ଼ୀ
କଣ୍ଠେ ନୈରାମଣି ବାଲି ଜାଗନ୍ତେ ଉପାଡ଼ୀ ॥ ଧ୍ରୁ ॥
ଛାଡୁ ଛାଡ଼[୩] ମାଆ ମୋହା ବିଷମେ[୪] ଦୁନ୍ଦୋଲୀ
ମହାସୁହେ ବିଲସନ୍ତି ଶବରୋ ଲଇଆ ସୁଣମେ ହେଲୀ[୫] ॥ ଧ୍ରୁ ॥
ହେରି ଷେ ମେରି ତଇଲା ବାଡ଼ୀ ଖସମେ ସମତୁଲା
ଷୁ କଡ଼ଏ ସେରେ[୬] କପାସୁ ଫୁଟି (ଲିଟି) ଲା ॥ ଧ୍ରୁ ॥
ତଇଲା ବାଡ଼ିର ପାସେଁର ଜୋହ୍ନା ବାଡ଼ୀ ତାଏଲା[୭] ।
ଫିଟେଲି ଅନ୍ଧାରି ରେ ଅକାଶ ଫୁଲିଆ[୮] ॥ ଧ୍ରୁ ॥

---

* ପୋଥିରେ ଖଃସମେ ।

୧. ବାଡ଼ୀ
୨. ହିଏଁ (ଟୀକାନୁସାର, ଶ.) ?
୩. ଛାଡ଼ ଛାଡ଼ (ଟୀକା)
୪. ବିଷମ/ମୋ (ସେ) ?
୫. = ସୁଣ ମେହେଲୀ
୬. = ଷୁକଡ଼ ଏସେ (ହୋ), ଷୁକଡ଼ ଏ ସେ (ବା)
୭. ତାଏଲା (ଶ., ବା)
୮. ଫୁଲିଲା (ମୁ)

କଙ୍ଗୁରି ନା[୯] ପାକେଲା ରେ ଶବରଶବରି ମାତେଲା
ଅଣୁଦିଣ ଶବରେ କିମ୍ପି ନ ଚେବଇ ମହାସୁଦେଁ ଭେଲା ॥ ଧ୍ରୁ ॥
ଘୁରିବାପେ ଖଇଲାରେଁ[୧୦] ଦିଆଁ ଚଞ୍ଚାଳୀ
ତହିଁ ତୋଲି ଶବରେ ଦକଏଲା[୧୧] କାନ୍ଦଶ[୧୨]
ସଗୁଣ ଶିଆଳୀ ॥ ଧ୍ରୁ ॥
ମାରିଲ ଭବମଣ୍ଡାରେ ଦହଦିହେ ଦିଧ ଲିବଲୀ[୧୩]
ହେ ରପେ[୧୪] ସବରେ ନିରେ ବଣ ଭଇଲା
ଫିଟିଲି ଷବରାଳୀ ॥ ଧ୍ରୁ ॥



---

୯. ଜଙ୍ଗୁରିନା; କଙ୍ଗୁରି (ବା)
୧୦. = ଖଇଲା ରେ
୧୧. [ତା]ହ କ[illegible]
୧୨. କାନ୍ଦଣ
୧୩. = ଦିଧଲି ବଳୀ
୧୪. = ହେର ଯେ